# କିଏ ରେ ତୁହି କିଏ

ପିଲାଙ୍କ ପାଇଁ କବିତା



- କିଏରେ ତୁହି କିଏ
- ବିଲୁଆ କଥାଟି ସତ

**ଡକ୍ଟର କୃତ୍ତିବାସ ନାୟକ**



ଅରୁଣ ତରୁଣ

ଶିଶୁ ସାହିତ୍ୟ ବିକାଶ ସମିତି

କେନ୍ଦୁଝର



# କିଏରେ ତୁହି କିଏ

ରଚନା : **ଡକ୍ଟର କୃତ୍ତିବାସ ନାୟକ**
(ଜାତୀୟ ପୁରସ୍କାର ପ୍ରାପ୍ତ ଶିଶୁ ସାହିତ୍ୟିକ)

ଅଳଂକରଣ ଶ୍ରୀ ଜ୍ଞାନ ରଥ

ପ୍ରକାଶକ **ଅରୁଣ- ତରୁଣ**
ଶିଶୁ ସାହିତ୍ୟ ବିକାଶ ସମିତି,
ଆକାଶବାଣୀ କଲୋନୀ,
କେନ୍ଦୁଝର- ୭୫୮ ୦୦୧

ମୁଦ୍ରଣ ଅର୍ଚ୍ଚନା ପ୍ରେସ୍, କଟକ
ସଂସାର ପ୍ରେସ, କଟକ

ପ୍ରଥମ ସଂସ୍କରଣ : ୧୯୯୬

ମୂଲ୍ୟ : **ଦଶଟଙ୍କା ମାତ୍ର**

# KIE RE TUHI KIE

(Poems for Children)

Author:**Dr. Kruttibas Nayak**
Art: Sri Gyana Rath
Published by: **Arun Tarun**
Akashvani Colony,
Keonjhar - 758 001
**Rupees Ten Only**

ତଗର ତଗ ମାଡ଼ି ଆସୁଛି --
ଶଁ ବାଳୁଆଟିଏ,
ଜୁନି ଓ ମିନି ପଗ୍ରିଦେଲେ -
'କିଏ ରେ ତୁହି କିଏ ?'



ଅଟକିଗଲା ଘଁ ଷାଲୁଆ-

ପିଲାଙ୍କ କଥା ଶୁଣି,

ଲୋମ ଫୁଲାଇ ମୁହଁ ହଲାଇ

ଦେଖାଇଦେଲା ଠାଣି ।



କହିଲା -- 'ମୁହିଁ ସଁବାଲୁଆ,
ପରଜାପତି ପୁଅ,
ଲୁଚିଲେ କାହିଁ ହୋଇବି ବଡ଼-
ଜାଗା ଟିକିଏ ଦିଅ ।





ଯେଉଁଠି ଥିବ ଅନ୍ଧାର ଆଉ-
ନଥିବ କିଛି ଡର,
ମଉନ ହୋଇ ସାଧନା ପାଇଁ
ଗଢ଼ିବି ଏକ ଘର ।"

ମିନି କହିଲା -- "ଦେହଟା ତୋର-
ଲୋମରେ ସାଲୁବାଲୁ,
ଦେଖିଲେ ତୋତେ ଲାଗୁଛି ଡର-
ଉଡ଼ିନପାରି ଗୁଲୁ ।



ରଙ୍ଗରଙ୍ଗିଆ ପରଜାପତି
କେଡ଼େ ସୁନ୍ଦର ସତେ,
କହିଲୁ ଟିକେ ଏମିତି ରୂପ-
ଦେଇଛି କିଏ ତୋତେ ?"

ସଁ ବାଲୁଆ ମୁଣ୍ଡକୁ ଟେକି-
କହିଲା -- ''ଶୁଣ ମିନି
ପଙ୍କରୁ ସିନା ପଙ୍କଜ ଫୁଟେ-
ସଭିଁଙ୍କ ମନ ଘେନି ।



ଅଣ୍ଡାରୁ ଫୁଟି ଦେଖିଲି ଯେବେ-
ପାଖରେ ନାହିଁ ମାଆ,
ବିପଦ ବେଳେ ଦୁଃଖୀ ଦେଖିଲେ-
କିଏ କହିବ ଆହା !

ମାଆଟି ମୋର ଦେଇଯାଇଛି-
ରକ୍ଷା-କବଚଟିଏ,
ସେଇ ମୋ ଲୋମ ବିଷରେ ବୋଲା
ବିପଦେ ସାହା ହୁଏ ।


କଅଁଳ ଦେହ ଛୋଟିଆ ପାଦ,
ନାଲିଆ ଟିକିମୁହଁ,
ଖାଇଲି ପେଟେ ଗଛପତର
ବଢ଼ିଲା ମୋର ଦେହ ।

ଯାଉଛି ମୁହିଁ କରିବି ଯୋଗ
ବିଭୁଙ୍କୁ କରି ଜଣା,
ସୁନ୍ଦର ରୂପ ଫେରେଇ ଦେବେ-
ଲଗାଇଦେବେ ଡେଣା ।



ଉଡ଼ି ଆସିବି ଲୋମକୁ ଛାଡ଼ି
ରଙ୍ଗରଙ୍ଗିଆ ହୋଇ,
ସେଦିନ ତୁମେ ଦେଖିବ ମୋତେ-
ଫୁଲ ବଗିଗ୍ଚ ଯାଇ ।



ଅନ୍ଧାର ପରେ ଆଲୋକ ଆସେ-
ଦିବସ ପରେ ରାତି,
ଆଜିର ଯିଏ ସଁବାଳୁଆ-
କାଲି ପରଜାପତି ।''







ସଁ ବାଲୁଆ କଥାକୁ ଶୁଣି-
କହିଲେ କୁନି-ମୁନି,
''ପରଜାପତି ପୁଅଟି ତୁହି
ପାରିଲୁ ଏବେ ଚିହ୍ନି ।

ଠାକୁର ଘର କୋଣରେ ଲୁଚି-
ଯୋଗ କରିବୁ ଆ'--,
କହିବୁ ଆମେ ତୋ' ମନ କଥା-
ଖୁସି ହୋଇବେ ମାଆ ।


ଦିନେ ସଞ୍ଜବେଳେ ଥୁଣ୍ଟାଗଛ ଡାଳେ
କହୁଥିଲା ପେଚୁଟିଏ,
''ମୋ ପରି ସୁନ୍ଦରୀ ରୂପରେ ଗୁଣରେ
କୁହ ଅଛି ଆଉ କିଏ ?


ଡେଣା ଝାଡ଼ି ଝାଡ଼ି ଯାଉଥିଲା ଉଡ଼ି
ବାଦୁଡ଼ିଟି କଳାମୁହାଁ,
କହିଲା ପେଚ୍କୁ "ବାଟରେ ବସିଛୁ
ଅଶୁଭ ପକ୍ଷୀଟା ତୁହି ।"



ବାଦୁଡ଼ି କଥାଟା ବାଧିଲା ପେଚ୍‌କୁ -
ରାଗେ ହେଲା ଗରଗର,
କହିଲା -- ''ତୋତେ କି' ଲାଜ ନାହିଁ ଟିକେ-
ମୁହଁ ଦେଖାଉଛୁ ତୋର !

ଦିନଯାକ ତୁହି ଝୁଲିରହୁ ଡାଳେ
ଦେଣାରେ ନାହିଁ ତୋ' ପର,
ଚମ ଧୁଡୁଧୁଡୁ ଦେହ ତୋ' ଦେଖିଲେ,
ବାନ୍ତି ହୋଇଯାଏ ମୋର ।''

ବାଦୁଡ଼ି କହିଲା -- ''ଧିକ ତୋ' ଜୀବନ-
ଗାଲିଖିଆ କାମ କରୁ,
ମୂଷା ଖାଇ ତୋର ପାଟି ଗନ୍ଧ କରେ-
ତଥାପି ହାକୁଟି ମାରୁ !



ଶୁଖିଛୁ କେବେ କି' ଖଟା ମିଠା ଫଳ-
ଖାଏ ମୁହିଁ ସବୁଦିନ,
ପକ୍ଷୀ ହେଲୁ ସିନା ଚେପଟା ମୁହାଁ ଲୋ-
ଦେଖାଉଛୁ ବଡ଼ପଣ ।"


ବାଦୁଡ଼ିକୁ ଗୃହିଁ ପେଗୃ ରାଗି କହେ --
''ଭଲକି ଜାଣିଛି ତୋତେ,
ପକ୍ଷୀରେ ନୁହେଁ କି' ପଶୁରେ ନୁହେଁ ତୁ-
ଫୁଟାଣି ଦେଖାଉ ମୋତେ !''
୨୧



ସେହି ଗଛମୂଳେ ଛୁଆଙ୍କ ସାଥୀରେ
ରହେ ବିଲୁଆର ମାଆ,
ପେଗ୍ସ ବାଦୁଡ଼ିଙ୍କ କଳି ଶୁଣି ସିଏ
କାନ କରିଦେଲା ଠିଆ ।


ବିଲୁଆକୁ ଦେଖି ଖୁସି ହେଲେ ଦୁହେଁ-
ପଚାରିଲେ କରି ସାକ୍ଷୀ,
''କୁହ ତ ଭଉଣୀ ଆମରି ଭିତରୁ
କିଏ ଜଣେ ଭଲ ପକ୍ଷୀ ?''
୨୩


ପେଚା ବାଦୁଡ଼ିଙ୍କ କଥା ଶୁଣିସାରି --
ବିଲୁଆ ମାରିଲା ହାଇ,
କହିଲା -- ''ତୁମର ବୁଦ୍ଧି ଟିକେ ନାହିଁ,
ଖୋଲୁଛ ନିଜର ଗୋଇ ?
୨୪

ତୁମେ ଦୁହେଁ ପକ୍ଷୀଜାତିର କଳଙ୍କ
ସହିବା ଶକତି ନାହିଁ,
ନିଜର ଜାତିର ମହତ ସାରୁଛ-
ଜାତି ଅପଯଶ କହି ।

ପରନିନ୍ଦା ଗାଇ ପରଦୋଷ ଦେଇ,
ହୋଇଛି କେ କେବେ ବଡ଼ ?
ବଡ଼ ହେବାପାଇଁ ଇଚ୍ଛା କର ଯେବେ-
ପରନିନ୍ଦା କୁହା ଛାଡ଼ ।"



କଳିଗୋଳ କରି ନିଜ କଥା ସବୁ
କହିଦେଲ ମନ ଖୋଲି,
ଜାଣିନଥିଲି ମୁଁ ତୁମେ ଦୁଇପକ୍ଷୀ,
ଏଡ଼େ ହାନିମାନୀ ବୋଲି

ବିଲୁଆ କଥାଟା ଲାଗିଲା ପେଚାକୁ
ଚାପଡ଼ ଖାଇଲା ପରି
ବାଦୁଡ଼ି କହିଲା, ''କଟା ଘାଆରେ ମୋ'
ଚୂନ ଲଗାଇଲା ପରି ।''

ବାଦୁଡ଼ି ମୁହଁକୁ ଚାହିଁଦେଲା ପେଚା
ଦୁହିଁଙ୍କର ମୁହଁ କଳା,
ଭାବିଲେ -- ବିଲୁଆ ହାଡ଼ଖିଆ ପଶୁ-
କେଡ଼େ ଅପମାନ ଦେଲା !





ଲାଜରେ ପେଚ୍ଚର ମଥା ନଇଁଗଲା-
ବସିଲା ମଉନ ହୋଇ,
କରିଲା ଶପଥ 'ଆଉ କେବେ ହେଲେ-
ଝଗଡ଼ା କରିବି ନାହିଁ ।'

ସେହିଦିନୁ ପେଚ୍ଚ ବସୁଛି ମଉନେ-
ସବୁ ଖାଲି ଦେଖୁଥାଏ,
କେହି ପରନିନ୍ଦା କରିବା ଶୁଣିଲେ-
ଚେଁ ଚେଁ କରିଦିଏ ।

ନିଜ ଦୋଷ ବୁଝି ବାଦୁଡ଼ି କହିଲା --
''କରିବାନି ଆଉ କଳି,
ତୁମ ସଙ୍ଗେ ମିତ ବସିଲି ଆଜିଠୁଁ --
ଦୁହେଁ ହେଲେ କୋଳାକୋଳି ।



ପେଗୃର ମନଟା ଖୁସି ହୋଇଗଲା। --
କହିଲା -- ''ଶୁଣ ଗୋ ମିତ,
ପରକୁ ସହିଲେ ନିଜର ମଙ୍ଗଳ-
ବିଲୁଆ କଥାଟି ସତ !''

# ଡକ୍ଟର କୃତ୍ତିବାସ ନାୟକଙ୍କର
# କେତୋଟି ଲୋକପ୍ରିୟ ପୁସ୍ତକ

| | |
|---|---|
| ୧ । ଓଡ଼ିଆ ଶିଶୁଗଳ୍ପର ସ୍ୱରୂପ ଓ ବିକାଶ (ସନ୍ଦର୍ଭ) | ମୂଲ୍ୟ - ୧୦୦ ଟଙ୍କା |
| ୨ । ସଦାନନ୍ଦବାବୁଙ୍କ ସଂସାର (ଗଳ୍ପ ସଂକଳନ) | ୪୦ ଟଙ୍କା |
| ୩ । ଶୁଣିମା ହେଉ (ଲଳିତ ଗଳ୍ପ) | ୪୦ ଟଙ୍କା |
| ୪ । ପିଲାଙ୍କ ସାହିତ୍ୟର କଳା ଓ କୌଶଳ | ୨୫ ଟଙ୍କା |
| ୫ । ଅଭିନବ ଜ୍ଞାନସଂଗ୍ରହ : (ସାଧାରଣଜ୍ଞାନ ପୁସ୍ତକ) | ୨୧ ଟଙ୍କା |
| ୬ । ଶ୍ରଦ୍ଧାକର ସାହିତ୍ୟ ପରିକ୍ରମା (ସାହିତ୍ୟ ସମାଲୋଚନା) | ୧୫ ଟଙ୍କା |
| ୭ । ସମ୍ବଲପୁର ପ୍ରତିଭା (ଜୀବନୀ ସଂକଳନ) | ୧୩ ଟଙ୍କା |
| ୮ । ଭାରତର ବୀର ଶହୀଦ (ଶହୀଦ ଜୀବନୀ) | ୧୨ ଟଙ୍କା |
| ୯ । ଆଜିର କୋରାପୁଟ (ସାଧାରଣଜ୍ଞାନ ପୁସ୍ତକ) | ୮ ଟଙ୍କା |
| ୧୦ । ଉତ୍କଳ ଦର୍ପଣ (ସାଧାରଣଜ୍ଞାନ ପୁସ୍ତକ) | ୧୫ ଟଙ୍କା |
| ୧୧ । ସର୍ବଜ୍ଞମାନବ (ବିଜ୍ଞାନ ଭିତ୍ତିକ ଶିଶୁ ଉପନ୍ୟାସ) | ୬ ଟଙ୍କା |
| ୧୨ । ଯିଏ ରକ୍ତ ଦେଲେ ଆମରି ପାଇଁ (ଶହୀଦ ଜୀବନୀ) | ୬ ଟଙ୍କା |
| ୧୩ । ଉତ୍କଳର ବୀର ଶହୀଦ (ଶହୀଦ ଜୀବନୀ) | ୬ ଟଙ୍କା |
| ୧୪ । ଭାରତର ନାରୀ ଶହୀଦ (ଶହୀଦ ଜୀବନୀ) | ୬ ଟଙ୍କା |
| ୧୫ । ଶହୀଦ ଗ୍ରନ୍ଥମାଳା (୬ ଖଣ୍ଡ) (ଶହୀଦ ଜୀବନୀ) ପ୍ରତ୍ୟେକ | ୬ ଟଙ୍କା |
| ୧୬ । ରାଷ୍ଟ୍ରଗୁରୁ ରାଧାକୃଷ୍ଣନ୍ (ଜୀବନୀ) | ୬ ଟଙ୍କା |
| ୧୭ । ଉତ୍କଳ କେଶରୀ ମହତାବ୍ (ଜୀବନୀ) | ୬ ଟଙ୍କା |
| ୧୮ । ବକୁଳ ବନର ପଞ୍ଚସଖା (ଜୀବନୀ) (୪ ଖଣ୍ଡ) ପ୍ରତ୍ୟେକ | ୬ ଟଙ୍କା |
| ୧୯ । ବଣଭୋଜି (ଜାତୀୟ ପୁରସ୍କାରପ୍ରାପ୍ତ ଶିଶୁ ଉପନ୍ୟାସ) | ୧୦ ଟଙ୍କା |
| ୨୦ । କିଏରେ ତୁହି କିଏ (ଚିତ୍ରବହୁଳ ଶିଶୁ କବିତା) | ୧୦ ଟଙ୍କା |
| ୨୧ । ଫୁଲ ସବୁ ଫୁଟିଲେ (ଚିତ୍ରବହୁଳ ଶିଶୁ କବିତା) | ୧୦ ଟଙ୍କା |
| ୨୨ । ପଞ୍ଚାମୃତ (ପିଲାଙ୍କ ଗପ) | ୫ ଟଙ୍କା |
| ୨୩ । ବଢ଼ିଆମଜା (ମଜାଗପ) | ୫ ଟଙ୍କା |
| ୨୪ । ଆକାଶବାଣୀ (ବେତାର ଭକ୍ତି ଗୀତ) | ୫ ଟଙ୍କା |
| ୨୫ । ଅମଳିଯାଦୁ (ଶିଶୁ ଉପନ୍ୟାସ) | ୫ ଟଙ୍କା |
| ୨୬ । ଓଡ଼ିଶାର ଦେବଦେବୀ (୨ ଖଣ୍ଡ) ପ୍ରତ୍ୟେକ | ୫ ଟଙ୍କା |
| ୨୭ । ବଣମୂଳକର ବିଗ୍ରହ (ଶିଶୁ ନାଟକ) | ୫ ଟଙ୍କା |
| ୨୮ । ଆଖଣ୍ଡଳମଣି (ନାଟକ) | ୫ ଟଙ୍କା |
| ୨୯ । କେନ୍ଦୁଝର (ସାଧାରଣ ଜ୍ଞାନ) | ୨୦ ଟଙ୍କା |

**ଯୋଗାଯୋଗ – ପ୍ରତିଭା ନାୟକ, ଅରୁଣ-ତରୁଣ, ଆକାଶବାଣୀ କଲୋନୀ, କେନ୍ଦୁଝର-୧**